


# ଭାଲିଆମାଇଙ୍କ ବସ୍ ଯାତ୍ରା

ଭାଲିକାନ୍ନନ

ନେହେରୁ ବାଳ ପୁସ୍ତକାଳୟ

# ଭାଲିଆମାଇଙ୍କ ବସ୍ ଯାତ୍ରା

ଭାଲିକାନ୍ନନ

ଅଳଙ୍କରଣ

ଏସ୍. ଗୋପାଳନ୍

ଅନୁବାଦ

ବାଳକୃଷ୍ଣ ପଣ୍ଡା



ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

## ଭାଲିଆମାଇଙ୍କ ବସ୍ ଯାତ୍ରା

ଆଠ ବର୍ଷର ଟିକି ଝିଅ ଭାଲିଆମାଇ । ଦାଣ୍ଡ ଦରଜା ମୁହଁରେ ଠିଆ ହୋଇ ସମୟ କଟାଇବା ଥିଲା ତା'ର ସବୁଠୁ ବଡ଼ ସଉକ । ରାସ୍ତାର ନାନାପ୍ରକାର ଦୃଶ୍ୟକୁ ଦେଖି ସେ ଭାରି ଖୁସି ହେଉଥିଲା ।

ଭାଲିଆମାଇ ତା' ନିଜ ନାଁକୁ ଖୁବ୍ ଭଲ ପାଉଥିଲା । ପ୍ରକୃତରେ ଏ ସଂସାରରେ କିଏ ଅଛି ଯେ ତା' ନାଁକୁ ଭଲ ନପାଏ ?

ତଥାପି ଭାଲିଆମାଇକୁ ବେଳେବେଳେ ନିଜ ନାଁକୁ ବି ଭଲ ଲାଗୁନଥିଲା । ଘଟଣାଟି ହେଲା, ଅନ୍ୟ ଝିଅମାନେ ତାକୁ ଯେତେବେଳେ ଏପରି ଗୀତ ଗାଇ ଚିଡ଼ାଉଥିଲେ :

ଭାଲିଆମାଇ, ଭାଲିଆମାଇ
କେଣେ ଗଲା ତୋ ବର ?
ଭାଲିଆମାଇ, ଭାଲିଆମାଇ,
କାହିଁକି କଲା ସେ ପର ?

ସେ ଜାଣିପାରୁ ନଥିଲା କ'ଣ ବା ସେମାନଙ୍କୁ ଜବାବ୍ ଦେବ । ତା' ଆଖିରେ ଲୁହ ଭରି ଯାଉଥିଲା । କେବଳ ବିରକ୍ତ ହୋଇ ସେମାନଙ୍କ ଆଡ଼େ ମୁହଁ ମୋଡ଼ି ଦେଉଥିଲା ।

ହାୟ ! ଏହା ଦେଖି ସେମାନେ କ'ଣ ସହଜେ ଛାଡ଼ୁଥିଲେ । ପୁଣି ସମସ୍ତେ ମିଳିତ କଣ୍ଠରେ ତା' ନାଁରେ ଗାଉଥିଲେ :

ବଙ୍କା ମୁହିଁର ମୁହଁଟି ବଙ୍କା
ହୋଇ ସେପରି ଥାଉ,
ହାଣ୍ଡିର କଳା ନଛାଡ଼ି ଯେବେ
ଦିଶଇ ଦାଉ ଦାଉ !

ଭାଲିଆମାଇ ଏଥିରେ ବା କ'ଣ କରିବ ? ସେ ଘର ଭିତରକୁ ଦଉଡ଼ି ଯାଇ ସଁ ସଁ ହୋଇ କାନ୍ଦୁଥିଲା । ବାପା ମାଆଙ୍କ ଉପରେ ରାଗିଯାଇ ଭାବୁଥିଲା ଯେ, ସେମାନେ ତା'ର ନାଁ କାହିଁକି ଏପରି ରଖିଲେ । ରାଗଟି କିନ୍ତୁ କ୍ଷଣିକ ପାଇଁ । ସାଙ୍ଗେ ସାଙ୍ଗେ ନାଁଟି ପୁଣି ତା' ପାଇଁ ଆହୁରି ସୁନ୍ଦର ଆହୁରି ମଧୁର ହୋଇ ଉଠୁଥିଲା ।

ନିଜ ଗଳିରେ ଅବଶ୍ୟ ଭାଲିଆମାଇ ବୟସର ଖେଳସାଥୀ କେହି ନଥିଲେ । ତେଣୁ ଦାଣ୍ଡ ଦରଜା ମୁହଁରେ ଠିଆ ହେବା ଛଡ଼ା ତା'ର ଆଉ କିଛି ଉପାୟ ନଥିଲା । ମାଆ ପୁଣି ପାଖ ଗଳିକୁ ଯାଇ ଖେଳିବାକୁ ପୂରା ମନା କରିଥିଲେ ।

ଅନ୍ୟ ପିଲାମାନେ ବହୁ ସମୟ ଧରି ନାନା ଖେଳ ଖେଳୁଥିଲେ । କିନ୍ତୁ ଦାଣ୍ଡ ଦରଜା ମୁହଁରେ ଠିଆ ହୋଇ ରାସ୍ତାକୁ ଚାହିଁ ସେ ବେଶ୍ ଆନନ୍ଦ ଅନୁଭବ କରିପାରୁଥିଲା । ଏହା ଦ୍ୱାରା ମଧ୍ୟ ସେ ଅନେକ ନୂଆ ଆଉ ଅଜଣା ଅନୁଭୂତି ପାଇପାରୁଥିଲା ।

ଏହା ଥିଲା ସେଇ ସମୟର ଘଟଣା ଯେତେବେଳେ ଇଂରେଜମାନେ ଆମ ଦେଶରେ ରାଜୁତି କରୁଥିଲେ ।

ଥରେ ଜଣେ ଇଂରେଜ ସୈନିକ ସେ ବାଟ ଦେଇ ଯାଉଥିଲେ । ସେ ଦେଖିବାକୁ ଖୁବ୍ ଗୋରା । ସୁନ୍ଦର ପୋଷାକ ବି ପିନ୍ଧିଥିଲେ । ରାସ୍ତାଘାଟରେ ସ୍ତ୍ରୀଲୋକମାନେ ତାଙ୍କୁ ଟିକିଏ ଦେଖିବା ଲାଗି ଉଙ୍କି ମାରୁଥିଲେ ।

କେତେ ଛୁଆ ଓ କେତେକ ବୟସ୍କ ମଧ୍ୟ ତାଙ୍କୁ ଦେଖି ଆତଙ୍କରେ ଘର ଭିତରେ ଲୁଚିଗଲେ । କିନ୍ତୁ ଭାଲିଆମାଇ ଛପି ଯାଇନଥିଲା । ତୁମେ ଜାଣିଛ, ସେ କ'ଣ କଲା ? ଜୋତାର ହିଲ୍‌କୁ ତଳେ ଠକ୍ କିନା ବାଡ଼େଇ ଦେଲା । ତା'ପରେ ହସ ହସ ମୁହଁରେ ସୈନିକଙ୍କୁ ସାଲ୍ୟୁଟ ଦେଇ କହିଲା, ''ସଲାମ୍ ସାହେବ !''

ସୈନିକଟି ଏହା ଶୁଣି ତା'ଆଡ଼କୁ ମୁହଁ ବୁଲାଇଲେ । ଆଉ ହସିଦେଇ କହିଲେ, 'ସୁପ୍ରଭାତ' । ତା'ପରେ ସେ ତାଙ୍କ ବାଟରେ ଚାଲିଗଲେ । ଘଟଣାଟିରେ ଭାଲିର ଆନନ୍ଦର ସୀମା ରହିଲା ନାହିଁ । ଖୁସିରେ ଡ଼େଇଁ ଡ଼େଇଁ ଗୀତ ଗାଇ ନାଚିବାରେ ଲାଗିଲା । ତା'ପରେ ସମସ୍ତଙ୍କୁ ଛାତି ଫୁଲାଇ କହିଲା, ''ଦେଖ, ଗୋରା ସାହେବ ମୋ ସାଙ୍ଗରେ କିପରି କଥା ହେଲେ ।''

ଏହା ଶୁଣି ସମସ୍ତେ ଅବାକ୍ !

''ଏହା କିଛି କମ୍ ସାହସର କଥା ନୁହେଁ ।'' ସେ ଗଳିରେ ଥିବା ଲୋକଙ୍କ ଭିତରେ ତା'ର ନାଁ ଆସ୍ତେ ଆସ୍ତେ ବଢ଼ିବାକୁ ଲାଗିଲା ।

ପ୍ରକୃତରେ, ଭାଲିଆମାଇ ରହୁଥିବା ଗଳିରେ ବେଶୀ ଗାଡ଼ି ମୋଟରର ଭିଡ଼ ନଥିଲା । ତଥାପି ଏପରିକି ଗୋଟିଏ ବି ଗାଡ଼ି ସେ ରାସ୍ତାରେ ଯେ ଯାଉ ନଥିଲା ଏ କଥା

ନୁହେଁ । ସାମାନ୍ୟ କୋଳାହଳ ରହୁଥିଲା । ବଳଦ ଗାଡ଼ି ମଧ୍ୟ ରାସ୍ତାରେ ବେଳେବେଳେ ଯାଉଥିଲା । ତେଲ ଅଭାବରୁ ଏହାର ଚକାଗୁଡ଼ିକ କେଁ କଟର ଶବ୍ଦ କରୁଥିଲା । ବଳଦମାନଙ୍କ ବେକରେ ବନ୍ଧା ହୋଇଥିବା ଘଣ୍ଟି ଟିଂ ଟିଂ ଶବ୍ଦ ବି କରୁଥିଲା ।

ଗଳିରେ ଥିବା ଗୋଟିଏ ବୁଲା କୁକୁରର ମଜା କ'ଣ ଦେଖିବ ? ବ୍ୟସ୍ତ ହୋଇ ରାସ୍ତାର ଏପଟ ସେପଟ ଦୌଡ଼ୁଥାଏ । ହଠାତ୍ ଅଟକି ଯାଇ ରାସ୍ତା କଡ଼ରେ କୌଣସି ଅଜଣା ଜିନିଷକୁ ଶୁଙ୍ଘି ପକାଉଥିଲା । ପୁଣି ଗୋଡ଼ଟିଏ ଟେକି ସେଠାରେ ଥିବା ଛୋଟ ଗଛଟିକୁ ଓଦା କରି ଦେଉଥିଲା । ତା'ପରେ ପାଗଳଙ୍କ ପରି ଦୌଡ଼ । ଦେଖିବାକୁ ଭାରି ମଜା । ସତେ ଯେମିତି ସେ ବାଟରେ କ'ଣ ହଜାଇ ଆସିଛି, ଆଉ ଅନବରତ ଖୋଜିବାରେ ଲାଗିଛି । ସେ ଗଳିରେ ବେଳେବେଳେ ଭିକାରିଙ୍କର ବି ଭିଡ଼ ଲାଗେ । ଠେଲା ଗାଡ଼ିରେ ପନିପରିବା ବିକାଳି ବି ଆସନ୍ତି । ଭାଲି ଦିନସାରା ଅବଶ୍ୟ ଦାଣ୍ଡ ଦୁଆରେ ଠିଆ ହୋଇ ଏସବୁ ଦୃଶ୍ୟ ଦେଖୁଥିଲା । କିନ୍ତୁ ତାକୁ ବିଶେଷ ଆନନ୍ଦ ଦେଲାଭଳି କୌଣସି କୌତୁକିଆ ଖାସ୍ ଘଟଣା ନଥିଲା ।

ଗଳିରେ ଭାଲି ଲାଗି ସବୁଠାରୁ ମଜା କଥା ହେଲା,. ଟାଉନ୍ ବସ୍, ଯାହା କି ପ୍ରତି ଘଣ୍ଟାରେ ଥରେ ଏପଟରୁ ସେପଟକୁ ଆଉ ସେପଟରୁ ଏପଟକୁ ଯିବା ଆସିବା କରେ । ଥରକୁ ଥର ନୂଆ ନୂଆ ଯାତ୍ରୀ ଏଥିରେ ଆସୁଥିଲେ । ଏମାନଙ୍କୁ ଦେଖି ତା'ର ଆନନ୍ଦର ସୀମା କହିଲେ ନସରେ ।

ଦିନ ପରେ ଦିନ ଗଡ଼ି ଚାଲିଥାଏ । ଭାଲି କିନ୍ତୁ ବସ୍‌ଟିକୁ ମନ ଭରି ପ୍ରତ୍ୟେକ ଦିନ ଦେଖୁଥିଲା । ଥରେ ତା' ମନରେ ଛୋଟ ଆଶାଟିଏ ଉଙ୍କି ମାରିଲା । ଭାବିଲା, ସେହି ବସ୍‌ରେ ବସିବା ପାଇଁ ତାକୁ ଥରେ ସୁଯୋଗ ମିଳନ୍ତା କି ? ଏହି ଇଚ୍ଛା ତା'ର ବଢ଼ିବାରେ ଲାଗିଲା । ଗଳିର ଗୋଟିଏ କୋଣରେ ଯେତେବେଳେ ବସ୍ ଅଟକି ଯାଉଥିଲା, ସେତେବେଳେ ବସ୍ ଭିତରକୁ ଚଢୁଥିବା ଓ ଓହ୍ଲାଉଥିବା ଲୋକମାନଙ୍କୁ ଭାଲି ଏକଲୟରେ ଚାହିଁ ରହୁଥିଲା । ସେମାନଙ୍କୁ ଦେଖି ଭାଲିର ମନ ଭିତରେ ଅନେକ ଅନାବନା ଆଶା, ସ୍ୱପ୍ନ ଓ ଆଗ୍ରହ ଆଦି

ଭାବନା ଜାଗି ଉଠୁଥିଲା । ଯେତେବେଳେ ତା'ର ସାଙ୍ଗମାନେ ବସ୍‌ରେ ଚଢ଼ି ସହର ବୁଲି ବିଭିନ୍ନ ଦୃଶ୍ୟ ଦେଖିବା କଥା କହୁଥିଲେ, ସେତେବେଳେ ଭାଲି ଈର୍ଷାରେ ଜଳିଯାଉଥିଲା । ହଠାତ୍ ସେମାନଙ୍କ ପ୍ରତି ଇଂରାଜୀରେ 'ପ୍ରାଉଡ୍, ପ୍ରାଉଡ୍' ବୋଲି ଚିଲେଇ ଉଠୁଥିଲା । ଯଦିଓ ଭାଲି ଓ ତା' ସାଙ୍ଗମାନେ ଏ ପଦଟି ବହୁତ ସମୟରେ କହୁଥିଲେ, ଯାର ଅର୍ଥ କ'ଣ ଜାଣିନଥିଲେ ।

ବହୁତ ଦିନ ଧରି ଭାଲି ବସ୍‌ଯାତ୍ରୀ ଓ ତା'ର ଗାଁରୁ ସବୁବେଳେ ସହରକୁ ଯିବା ଆସିବା ଲୋକଙ୍କ କଥାବାର୍ତ୍ତାକୁ ଲକ୍ଷ୍ୟ କରି ସେମାନଙ୍କୁ ବିଭିନ୍ନ ବିଷୟରେ କିଛି କିଛି ପଚାରି ଶିଖୁଥିଲା । ସେ ସେମାନଙ୍କୁ ବିଭିନ୍ନ ପ୍ରଶ୍ନ ପଚାରି ବହୁତ ଅଜଣା ଜିନିଷ ଶିଖିବାର ବି ସୁଯୋଗ ପାଉଥିଲା ।

ତା' ଗାଁଠାରୁ ସହର ହେଉଛି ମାତ୍ର ଛଅ ମାଇଲ । ଏକତରଫା ବସ୍ ଖର୍ଚ୍ଚ ତିରିଶି ପଇସା । ତେଣୁ ଯିବା ଆସିବା ପାଇଁ ମୋଟ ଷାଠିଏ ପଇସା ଦରକାର । ବସ୍‌ଟି ସହରରେ ପହଞ୍ଚାଇବା ପାଇଁ ପଞ୍ଚଚାଳିଶି ମିନିଟ୍ ନିଏ । ସହରରେ ପହଞ୍ଚିବା ପରେ ସେ ଯଦି ସେହି ବସ୍ ଭିତରେ ବସି ରହି ପୁଣି ତିରିଶି ପଇସା ଦେଇଦେବ, ତା' ହେଲେ ସେହି ବସ୍‌ରେ ସେ ଘରକୁ ଫେରିଆସି ପାରିବ । ଯଦି ଦିନ ଗୋଟାଏରେ ଗାଁ ଛାଡ଼େ, ତେବେ ଗୋଟାଏ ପଞ୍ଚଚାଳିଶି ମିନିଟ୍‌ରେ ସହରରେ ପହଞ୍ଚିଯିବ । ଆଉ ପ୍ରାୟ ଦୁଇଟା ପଞ୍ଚଚାଳିଶି ମିନିଟ୍ ବେଳକୁ ବସ୍‌ରେ ନିଜ ଗାଁକୁ ଫେରିଆସି ପାରିବ ।

ଏହିପରି ଭାବରେ ସେ ବାରମ୍ବାର ଗଣି ଗଣି ମନ ଭିତରେ ଗୋଟିଏ ଯୋଜନା ପ୍ରସ୍ତୁତ କଲା ।

ଦିନକର ଘଟଣା । ଟାଉନ୍ ବସ୍‌ଟି ସୀମା ପାର କରି ଯେତେବେଳେ ମୁଖ୍ୟ ରାସ୍ତା ଉପରକୁ ଉଠୁଛି, କ୍ଷୀଣ ସ୍ୱରରେ ଗୋଟିଏ ଛୁଆର ଚିତ୍କାର ଶୁଭିଲା, ''ବସ୍ ରଖ, ବସ୍ ରଖ ।'' ହାତକୁ ହଲେଇ ହଲେଇ ଛୁଆଟି ଏମିତି ପାଟି କରୁଥିଲା ।

ବସ୍‌ର ଗତି କମି ଆସିଲା । କଣ୍ଡକ୍ଟର ବିରକ୍ତ ହୋଇ ବାହାରକୁ ଅନାଇ କହିଲେ, "ଠିକ୍ ଅଛି, କିଏ ଆସିବ ? ଯେଉଁମାନେ ଆସିବାକୁ ଅଛନ୍ତି, ଶୀଘ୍ର ଆସି ଯାଆନ୍ତୁ ।"

ଭାଲି କହିଲା, "ବସ୍ ରଖନ୍ତୁ ! ମୁଁ ଯିବି ।"

"ଆରେ, ସତେ ଆଉ କେହି ନାହାନ୍ତି, ତୁମେ ଯିବ ?" କଣ୍ଡକ୍ଟର ଆଶ୍ଚର୍ଯ୍ୟ ହୋଇ କହିଲେ ।

"ମୋର ସହର ଯିବାକୁ ଭାରି ଇଚ୍ଛା, ଆଜ ନିଅନ୍ତୁ ଆପଣଙ୍କ ବସ୍ ଭଡ଼ା", କହି ଧରିଥିବା ଖୁଚୁରା ପଇସାତକ କଣ୍ଡକ୍ଟରଙ୍କୁ ଦେଖାଇଲା ।

"ଠିକ୍ ଅଛି, ପ୍ରଥମେ ଭିତରକୁ ଆସ", କଣ୍ଡକ୍ଟର ଆସ୍ତେ ତା' ହାତ ଧରି ବସ୍ ଭିତରକୁ ଉଠେଇ ଆଣିଲେ ।

"ଆରେ ! ମୁଁ ନିଜେ ଚଢ଼ିବି । ଆପଣ କାହିଁକି ମୋ ହାତ ଧରି ବସ୍ ଭିତରକୁ ଟାଣୁଛନ୍ତି ।"

ବସ୍ ଭିତରର ସବୁ ଜିନିଷ ଭାଲିକୁ ଯେମିତି ନୂଆ ନୂଆ ଲାଗୁଥିଲା । ରାସ୍ତାସାରା ଭାଲି ଠିଆ ହୋଇ ବାହାରର ଦୃଶ୍ୟ ସବୁ ଦେଖୁଥିଲା, କାରଣ ଝରକା ଦେଇ ସବୁ ଜିନିଷ ତା'କୁ ଭଲଭାବେ ଦେଖାଯାଉ ନଥିଲା ।

ବର୍ତ୍ତମାନ ବସ୍‌ଟି ଗୋଟିଏ କେନାଲ କୂଳରେ ଆସି ପହଞ୍ଚିଲା । ସେଠାରେ ରାସ୍ତା ଭାରି ସଂକୀର୍ଣ୍ଣ । ଗୋଟିଏ ପଟେ କେନାଲର ଦୃଶ୍ୟ ଓ ତା'ର କିଛି ଦୂରରେ ତାଳଗଛ । ଘାସ ପଡ଼ିଆ ଆଉ ଦୂରକୁ ପର୍ବତମାଳା ମଧ୍ୟ ଦେଇ ଆକାଶର ଦୃଶ୍ୟ ଅତୀବ ମନୋରମ । ଅନ୍ୟ ଦିଗରେ ଗୋଟିଏ ଖାଲୁଆ ରାସ୍ତା ଓ ତା'ଠୁ କିଛି ଦୂରରେ ଏକର ଏକର ବ୍ୟାପୀ ସବୁ କ୍ଷେତ । ରାସ୍ତାର ଚତୁଃପାର୍ଶ୍ୱ ସବୁଜ ଦୃଶ୍ୟ ଭରା ।

ପ୍ରକୃତରେ ଏସବୁ କି ସୁନ୍ଦର ଦେଖାଯାଉଥିଲା !

ଏହି ସମୟରେ ହଠାତ୍ ଗୋଟିଏ ଶବ୍ଦ ଶୁଣି ସେ ଚମକି ପଡ଼ିଲା ।

କିଏ ଜଣେ କହିଲା, ''ଏ ଝିଅ ଶୁଣ, ଏମିତି ଠିଆ ହେବା ଠିକ୍ ନୁହେଁ । ବସି ପଡ଼ ।''

ସେ ଚୁପ୍‌କିନା ବସି ପଡ଼ି ପାଖକୁ ଚାହିଁଲା । ଜଣେ ଭଦ୍ରଲୋକ ତାକୁ ଏକଥା କହୁଛନ୍ତି । ରାଗିଯାଇ ଭାଲି ତାଙ୍କ ମୁହଁକୁ ବଲବଲ କରି ଚାହିଁଲା ।

''ଏହିଠାରେ କେହି ହେଲେ ଛୁଆ ନାହାନ୍ତି । ମୁଁ ତ ପୂରା ଟିକଟ ପଇସା ଦେଇଛି ।'' ଭାଲି ତାଙ୍କୁ ବିରକ୍ତ ଭାବ ଦେଖାଇ କହିଲା ।

କଣ୍ଡକ୍ଟର କଥା ମଝିରେ କହିଲେ, ''ସାର୍ ! ଏ ହେଉଛନ୍ତି ଆମର ଜଣେ



ସମ୍ମାନନୀୟା ମ୍ୟାଡ଼ାମ୍ । କେବେହେଲେ ଜଣେ ଛୁଆ ନିଜେ ପଇସା ଦେଇ କ'ଣ ଏକା ସହରକୁ ଯାତ୍ରା କରନ୍ତି ?''

ପ୍ରତ୍ୟୁତ୍ତରରେ ଭାଲି ଚିଡ଼ିଯାଇ ସତର୍କ କରାଇ କହିଲା, ''ମନେ ରଖ, ମୁଁ ମ୍ୟାଡ଼ାମ୍ ନୁହେଁ । ପଇସା ଦେଇଥିଲେ ମଧ୍ୟ ମୋର ଟିକଟ ତୁମେ ବର୍ତ୍ତମାନ ସୁଦ୍ଧା ଦେଇନାହଁ ।''

କଣ୍ଡକ୍ଟର ଧୀର ସ୍ୱରରେ କହିଲେ, ''ଆଜ୍ଞା ମନେରଖିଲି ।'' ଏକଥା ସମସ୍ତେ ଶୁଣି ହସି ଉଠିଲେ । ଭାଲି ବି ସମସ୍ତଙ୍କ ସାଥୀରେ ଛଳନାପୂର୍ଣ୍ଣ ହସ ହସି ଏକଦମ୍ ଚୁପ୍ ହୋଇଗଲା ।

କଣ୍ଡକ୍ଟର ଟିକଟଟିଏ ସାମାନ୍ୟ ଚିରି ତା' ହାତକୁ ବଢ଼ାଇ ଦେଇ କହିଲେ, ''ଆରାମ୍‌ରେ ବସନ୍ତୁ । ବସିବା ପାଇଁ ପଇସା ଦେଇ ଠିଆହୋଇ କାହିଁକି ରହୁଛନ୍ତି ?''

ସେ କହିଲା, ''ମତେ ଠିଆ ହେବାକୁ ଭଲ ଲାଗେ ।''

''ଯେତେବେଳେ ବସ୍‌ଟି ମୋଡ଼ରେ ବୁଲିବ, ଯଦି ଠିଆ ହୋଇ ରହିଥିବ ତେବେ ପଡ଼ି ଯାଇପାର ବା ହଠାତ୍ ଧକ୍‌କା ଲାଗିପାରେ । ତେଣୁ ମୁଁ କହୁଥିଲି କି ଝିଅ ଆରାମ୍‌ରେ ବସିଯାଅ ।'' କଣ୍ଡକ୍ଟର ସ୍ନେହରେ କହିଲେ ।

''ମନେ ରଖନ୍ତୁ, ତୁମକୁ ବାରମ୍ବାର କହୁଛି ଯେ ମୁଁ ଛୁଆ ନୁହେଁ । ଆଠ ଦଶ ବର୍ଷ ବୟସର ଜଣେ ବାଳିକା ।''

''ଅବଶ୍ୟ, ଅବଶ୍ୟ । ମୁଁ କେଡ଼େ ବୋକା । ଆଠ ବର୍ଷର । ତୁମେ... !''

ବସ୍ ଗୋଟିଏ ଜାଗାରେ ଅଟକି ଗଲା । ସେଠାରେ କିଛି ଯାତ୍ରୀ ବସ୍ ଉପରକୁ ଉଠି ଆସିଲେ । ଏଥିରେ କଣ୍ଡକ୍ଟର କିଛି ସମୟ ପଇସା ଆଦାୟରେ ବ୍ୟସ୍ତ ରହିଲେ । ଭାଲି ଚୁପ୍‌କିନି ନିଜ ଜାଗାରେ ବସି ପଡ଼ିଲା, କାଳେ ତା' ଜାଗାଟା ଆଉ କିଏ ଅଧିକାର କରିନେବ । ଏହି ସମୟରେ ଜଣେ ଭଦ୍ର ମହିଳା ତା' ପାଖରେ ଆସି ବସିଲେ । ଗାଡ଼ି ଛାଡ଼ିବା ମାତ୍ରେ ସେ ଭାଲିକୁ ପଚାରିଲେ, ''ତୁମେ କ'ଣ ଏକା ଯାଉଛ ଝିଅ ?'' ମହିଳାଙ୍କୁ



ଦେଖି ଭାଲିକୁ ଭାରି ଘୃଣା ଲାଗିଲା । ତାଙ୍କର ଏଡ଼େ ବଡ଼ ବଡ଼ କାନର କଣାରେ ନିହାତି ଅସୁନ୍ଦର ଅଳଙ୍କାର । ପାଟି ଭିତରେ ତମାଖୁ, ଭାରି ଉତ୍କଟ ଗନ୍ଧ । ପାଟି ଭିତରର ପାନ ଛେପ ଯେ କୌଣସି ମୁହୂର୍ତ୍ତରେ ବାହାରକୁ ସେ ଫୋପାଡ଼ିବେ । ଛି ଛି... ...

''ହଁ । ମୁଁ ଏକା ଯାଉଛି । ମୋ ପାଖରେ ଟିକଟ ବି ଅଛି ।'' ଭାଗି ସଂକ୍ଷିପ୍ତରେ ଏବଂ ସ୍ପଷ୍ଟ ସ୍ୱରରେ ଭାଲି ଉତ୍ତର ଦେଲା ।

କଣ୍ଡକ୍ଟର କହିଲେ, ''ହଁ, ସେ ସହରର ପରିଦର୍ଶନରେ ଯାଉଛନ୍ତି । ଆଉ ତିରିଶି ପଇସାର ଟିକଟ ବି ନେଇଛନ୍ତି ।''

ଭାଲି ଛଳନାପୂର୍ଣ୍ଣ ହସରେ କହିଲା, ''ଓହୋ, ଆପଣ ନିଜ ବିଷୟରେ ଧ୍ୟାନ ଦିଅନ୍ତୁ ନା ।''

କଣ୍ଡକ୍ଟର ବି ସାମାନ୍ୟ ହସିଦେଲେ । ମହିଳା ଜଣକ ପାନ ପିକ ଭରା ଗଳାରେ ପଚାରିଲେ, ''ତୁ ଏତେ ଛୋଟ ଝିଅଟିଏ, ଏକା ଏକା ବାହାରକୁ ବୁଲି ବାହାରିଛୁ । ତୋର ମାଆକୁ ନି ଡରେ ? ସହରରେ କେଉଁ ଜାଗାକୁ ଯିବୁ ଜାଣିଛୁ ? କେଉଁ ଗଳିକୁ ? ଆଉ କାହା ଘରକୁ ?''

ଭାଲି ସାଙ୍ଗେ ସାଙ୍ଗେ କହିଲା, ''ଆପଣ କାହିଁକି ବ୍ୟସ୍ତ ହେଉଛନ୍ତି । ମୁଁ ସବୁ କିଛି ଜାଣିଛି ।'' ଏହା କହି ଝରକା ଆଡ଼କୁ ମୁହଁ ବୁଲେଇ ବାହାରକୁ ଦେଖିବାକୁ ଲାଗିଲା ।

ଭାଲିର ଏହା ଥିଲା ପ୍ରଥମ ଯାତ୍ରା... । ଏଥିପାଇଁ ତାକୁ କେତେ କଷ୍ଟ, ସାବଧାନତା ଏବଂ ଯୋଜନା ପ୍ରସ୍ତୁତ କରିବାକୁ ପଡ଼ିଥିବ ! ଅତି ଯତ୍ନରେ ଯେତେ ସବୁ ଖୁଚୁରା ପଇସା ଏକାଠି କରି ରଖିଥିଲା, ସବୁ ଲୋଭ ତ୍ୟାଗ କରି ଏପରିକି ମିଠେଇ, ଖେଳନା, ବେଲୁନ୍ ଆଦି ନକିଣି ଷାଠିଏ ପଇସା ହେବାଯାଏଁ ପଇସା ସଞ୍ଚୟ କରିବା ପାଇଁ ସେ ଦୃଢ଼ ପ୍ରତିଜ୍ଞା କରିଥିଲା । ବିଶେଷକରି ଦିନେ ଗାଁ ଯାତ୍ରାରେ ସମସ୍ତ ପିଲା ଚକାଭଉଁରୀ ଖେଳରେ ପଇସା ଦେଇ ଘୂରିବା ବେଳେ ନିଜର ଇଚ୍ଛାକୁ ଦବାଇ ପଇସା ଥିଲେ ମଧ ସେଥିରେ ଖର୍ଚ୍ଚ କରିନଥିଲା ।

କିଛି ପଇସା ଜମା କରିବା ପରେ ତା'ର ଅନ୍ୟ ଗୋଟିଏ ସମସ୍ୟା ଥିଲା ଯେ ସେ କିପରି ମା'ଙ୍କ ଅଜଣାରେ ଘର ବାହାରକୁ ଯାଇ ଟିକିଏ ବୁଲି ଆସିବ । ହେଲେ ଏଥିପାଇଁ ତାକୁ ବିଶେଷ କଷ୍ଟ କରିବାକୁ ପଡ଼ିନାହିଁ । ପ୍ରତିଦିନ ଖାଇସାରିବା ପରେ ମା'

ଦିନ ଗୋଟାଏରୁ ଚାରିଟା ବା ଚାରିଟା ତିରିଶି ମିନିଟ୍ ପର୍ଯ୍ୟନ୍ତ ଶୋଇଯାଆନ୍ତି । ଭାଲି ଏହି ସମୟରେ ଘର ବାହାରକୁ ଯାଇ ଟିକିଏ ବୁଲି ଆସୁଥିଲା । କିନ୍ତୁ ସେ ଆଜି ପୂରାପୂରି ବୁଲି ଯିବା ଲାଗି ମନସ୍ଥ କଲା । ତା'ବି ଆହୁରି ଦୂର ଜାଗା ସହରକୁ ।

ତା'ପରେ ବସ୍ ଖୋଲା ରାସ୍ତାରେ ଗାଁର ସବୁ ଚାଳଛପର ଘରକୁ ପଛରେ ପକାଇ ଆଉ ଅଙ୍କାବଙ୍କା ରାସ୍ତା ଦେଇ ଆଗକୁ କ୍ଷିପ୍ର ଗତିରେ ଗଡ଼ିବାକୁ ଲାଗିଲା । ସମୟେ ସମୟେ ଅନ୍ୟ ଦିଗରୁ ଆସୁଥିବା ଗାଡ଼ି ମଟର ବା ରାସ୍ତାରେ ଯାଉଥିବା ଯାତ୍ରୀମାନଙ୍କ ଉପରେ ମାଡ଼ି ଗଲାପରି ଲାଗୁଥିଲା । ହେଲେ ଖୁବ୍ ସତର୍କ ଭାବେ ସେ ସବୁକୁ ପଛରେ ପକାଇ ବସ୍‌ଟି ଆଗକୁ ଆଗକୁ ଚାଲିଥାଏ । ବସ୍‌ର ଗତି ସହିତ ତାଳ ଦେଇ ଦୁଇ ପାଖର ଗଛଲତାଗୁଡ଼ିକ ଜୋର୍‌ରେ ପଛକୁ ପଛକୁ ଚାଲିଯାଉଥାନ୍ତି ଆଉ ବସ୍‌ଟି ସେଗୁଡ଼ିକର ନିକଟତର ହୋଇ ଆସିଲେ ଗଛଗୁଡ଼ିକ ଯେପରି ଅସହାୟ ଅବସ୍ଥାରେ ଠିଆ ହେଲାପରି ଜଣାପଡୁଥିଲା ।

ଭାଲି ହଠାତ୍ ତାଳି ମାରିବାକୁ ଲାଗିଲା । ଘଟଣା କ'ଣ ! ଗୋଟିଏ ଗାଈ ତା' ଲାଞ୍ଜ ଉପରକୁ ଟେକି ବସ୍‌ର ଡ଼ାହାଣପଟ ରାସ୍ତା ମଝିରେ ଖୁବ୍ ଜୋର୍‌ରେ ଦୌଡ଼ି ଯାଉଥିଲା । ବସ୍‌ର ଚାଳକ ଯେତେ ହର୍ଣ୍ଣ ବଜାଇଲେ ମଧ୍ୟ ଗାଈଟି ସେତିକି ଜୋର୍‌ରେ ଛାନିଆ ହୋଇ ଆଗକୁ ଆଗକୁ ଦୌଡୁଥିଲା ।

ଏ ଦୃଶ୍ୟ ଭାଲିକୁ ଭାରି କଉତୁକିଆ ଲାଗିଲା । ଏଥିରେ ସେ ହସି ହସି ନାକେଦମ୍ ହୋଇଗଲା । ତା' ଆଖିରୁ ଟପ୍ ଟପ୍ ଲୁହ ଗଡ଼ି ଆସିବା ଯାଏଁ ସେ ହସୁଥାଏ ।

କଣ୍ଡକ୍ଟର କହିଲେ, ''ହଉ, ହଉ- ଏତିକି ଯଥେଷ୍ଟ । ଆଉ ଟିକିଏ ହସ କାଲି ପାଇଁ ରଖିଥାଅ ।''

ପରିଶେଷରେ ଗାଈଟି ଦୂରେଇ ଗଲା ।

ତା'ପରେ ବସ୍‌ଟି ଗୋଟିଏ ରେଳ ଫାଟକ ପାଖରେ ଯାଇ ପହଞ୍ଚିଲା । ରେଳ ଗାଡ଼ିଟି କିଛି ଦୂରରୁ ଗୋଟିଏ ରେଖା ପରି ଦେଖାଯାଉଥିଲା । ଯେତେବେଳେ ତାହା



ନିକଟରୁ ନିକଟତର ହେବାକୁ ଲାଗିଲା, ଆସ୍ତେ ଆସ୍ତେ ବିରାଟ ଦେଖାଗଲା । ଗେଟ୍ ପାର ହେବା ବେଳେ ତା'ର ଘଡ଼ ଘଡ଼ ଶବ୍ଦରେ ବସ୍‌ଟି ମଧ୍ୟ ଥରିବାକୁ ଲାଗିଲା । ରେଳ ଫାଟକ ପାରହୋଇ ବସ୍‌ଟି କିଛି ଦୋକାନ ବଜାର ଦେଇ ପାରହେବା ପରେ ଟିକିଏ ମୋଡ଼ ବୁଲି

ପୁଣି ଗୋଟିଏ ବଡ଼ ରାସ୍ତାକୁ ବାହାରିଲା । ଏତେ ସୁନ୍ଦର ଚକଚକିଆ ଲୁଗାପଟା, ଆସବାବପତ୍ର, ଗହଳ ଚହଳ ଦେଖି ଭାଲି ଭାରି ଆଚମ୍ବିତ ହୋଇ ଏକଲୟରେ ସବୁ ଜିନିଷ ଆଡ଼କୁ ଦେଖୁଥାଏ ।

ଶେଷରେ ବସ୍‌ଟି ଅଟକି ଯିବା ସଙ୍ଗେ ସଙ୍ଗେ ସମସ୍ତେ ତଳକୁ ଓହ୍ଲାଇ ଆସିଲେ ।

କଣ୍ଡକ୍ଟର କହିଲେ, ''ଏ ମା', ତୁମେ ଓହ୍ଲେଇବ ନାହିଁ କି ? ତୁମର ତିରିଶି ପଇସା ଏଥର ସରିଲା ।''

ଭାଲି ହଠାତ୍ ପକେଟରୁ ତିରିଶି ପଇସା ବାହାରକରି କଣ୍ଡକ୍ଟରଙ୍କୁ ବଢ଼େଇଦେଇ କହିଲା, ''ମୁଁ ପୁଣି ଏହି ବସ୍‌ରେ ଫେରିଯିବା ପାଇଁ ଚାହୁଁଛି ।''

''ଆରେ, କଥା କ'ଣ କି ?''

''କିଛି ନାହିଁ । ମୁଁ ଥରେ ବସ୍‌ରେ ବସି ବୁଲିବା ଲାଗି ଚାହୁଁଥିଲି, ବୁଝିଲେ ।''

''ତୁମର କ'ଣ ସହର ବୁଲି ଦେଖିବାକୁ ଇଚ୍ଛା ନାହିଁ ?''

''ଏକୁଟିଆ ? ଇଲୋ ମା' ! ... ମତେ ଡ଼ର ମାଡୁଛି ।''

ଭାଲିର କଥାବାର୍ତ୍ତା, ଚାଲିଚଳଣି କଣ୍ଡକ୍ଟରଙ୍କୁ ଭାରି ମଜା ଲାଗିଲା । ସେ କହିଲେ, ''ହେଲେ, ତୁମକୁ ବସ୍‌ରେ ଚଢ଼ି ଆସିବାକୁ କ'ଣ ଡ଼ର ମାଡ଼ିଲାନି ?''

ଭାଲି କହିଲା, ''ଏଥିରେ ଡ଼ରିବାର କ'ଣ ଅଛି ?''

''ଟିକିଏ ତଳକୁ ଓହ୍ଲେଇ ଆସି ମିଠେଇ ଦୋକାନରେ କିଛି ଖାଇ ଆସ । ସେମିତି କିଛି ଡ଼ରିବାର ନାହିଁ ।''

''ଓହୋ, ନାଇଁ, ନାଇଁ । ମୁଁ ଜମା ଯିବି ନାହିଁ ।''

''ଠିକ୍ ଅଛି, ତେବେ ତୁମ ଲାଗି କିଛି ମିଠେଇ ବା ଅନ୍ୟ କିଛି ଆଣି ଦେବି ?''

''ନା, ଏସବୁ କିଣିବା ପାଇଁ ମୋ ପାଖରେ ପଇସା ବି ନାହିଁ । କେବଳ ମୋତେ ଗୋଟିଏ ଟିକଟ ଦିଅନ୍ତୁ ଘରକୁ ଫେରିବା ଲାଗି ।''

''ତୁମେ ମୋତେ କିଛି ପଇସା ଦେବା ଦରକାର ନାହିଁ । ମୁଁ ତୁମ ପାଇଁ କିଛି ଖାଇବା ଲାଗି ନେଇଆସିବି । ଭୋକ ଲାଗୁଥିବ ।''

ଭାଲି ସାମାନ୍ୟ ରାଗିଯାଇ କହିଲା, ''ଦୟାକରି ମୋ ଲାଗି କିଛି ଆଣନ୍ତୁ ନାହିଁ ।''

ଠିକ୍ ସମୟରେ ବସ୍ ଫେରିବା ଲାଗି ପ୍ରସ୍ତୁତ । ସେତେବେଳେ ବସ୍‌ରେ ସେମିତି ଲୋକ ଗହଳି ନଥିଲା । କଣ୍ଡକ୍ଟର ଟିକଟ ଦେଉ ଦେଉ ପଚାରିଲେ, ''ତୁମ ମା' ତୁମକୁ ଖୋଜିବେନି ?''

ଭାଲି କହିଲା, ''ନା, ମୋତେ କେହି ଖୋଜିବେ ନାହିଁ ।''

ଘୁଁ... ଶବ୍ଦରେ ବସ୍ ପୁଣି ଥରେ ସେହି ସବୁ ରାସ୍ତା ଦେଇ ଚାଲିଲା । ପୂର୍ବପରି ରାସ୍ତା ଦୁଇ ପାଖର ମନୋରମ ଦୃଶ୍ୟ ଅପଲକ ନୟନରେ ଭାଲି ଦେଖୁଥାଏ ।

କିନ୍ତୁ, ହଠାତ୍... ଦେଖ ! ସେହି ଗାଈଟି କେମିତି ରାସ୍ତା ଉପରେ ମରି ପଡ଼ିଛି । ରାସ୍ତାରେ ଯାତାୟାତ କରୁଥିବା କୌଣସି ମଟର ଗାଡ଼ିରେ ଆଘାତ ପାଇ ଗାଈଟି ମରିଯାଇଛି ।

ସେହି ଛନଛନିଆ ଜୀବଟା କିଛି ସମୟ ପୂର୍ବେ କେମିତି ରାସ୍ତାରେ ନାଚିକୁଦି ଦଉଡୁଥିଲା । ତା'ର ଅବସ୍ଥା ହଠାତ୍ ଏମତି କିପରି ହେଲା ? ଚଳଚଞ୍ଚଳ ଆଖି ଦୁଇଟି ସ୍ଥିର କରି ମେଞ୍ଚାଏ ରକ୍ତ ଉପରେ ଗାଈଟି ମରି ପଡ଼ିଥିଲା ।

ଓଃ, କି ଦୁଃଖ !

ଭାଲି ପଚାରିଲା, ''ଇଏ ସେଇ ଗାଈ ତ... ଯେଉଁଟି ଆମେ ଆସିବା ବେଳେ ଆମ ସାମନାରେ ଦଉଡୁଥିଲା ? କିଏ ତାକୁ ମାରିଲା ?''

କଣ୍ଡକ୍ଟର କହିଲେ, ''ହଁ । ବୋଧହୁଏ କୌଣସି ମଟର ଧକ୍କାରେ ସେ ମରିଯାଇଛି ।''

ବସ୍ ଗର୍ଜନ କରି ଚାଲିଥାଏ । ଗାଈଟିର ମରିବା ଦୃଶ୍ୟ ଭାଲି ଆଖି ଆଗରେ ଖାଲି ଝଲକି ଉଠି ତା'ର ସମସ୍ତ ଆଗ୍ରହକୁ ଦବେଇ ଦେଲା । ଝରକା ଦେଇ ବାହାରର କୌଣସି

ମନୋହର ଦୃଶ୍ୟ ଦେଖିବାର ଆଗ୍ରହ ତା'ର କମିଗଲା । ସେ ଏଣିକି କେବଳ ତା' ଜାଗାରେ ଚୁପ୍‌ଚାପ୍ ବସି ରହିଲା ।



ଠିକ୍ ତିନିଟା ଚାଳିଶି ମିନିଟ୍‌ରେ ବସ୍‌ଟି ଆସି ଗାଁରେ ପହଞ୍ଚିଲା । ବସ୍ ବନ୍ଦ ହେବା କ୍ଷଣି ଭାଲି ବସିବା ଜାଗାରୁ ଉଠି ଭିଡ଼ିମୋଡ଼ି ହୋଇ ହାଇ ମାରି କଣ୍ଡକ୍ଟରଙ୍କୁ କହିଲା,





"ହଉ ଆଜ୍ଞା ଯାଉଛି, ପୁଣି କେବେ ଦେଖା ହେବ।"

"ଠିକ୍ ଅଛି ମ୍ୟାଡ଼ାମ୍। ଯେତେବେଳେ ତୁମେ ବସ୍‌ରେ ଯିବାକୁ ଇଚ୍ଛା କରିବ, ଆମ ବସ୍‌ରେ ତୁମକୁ ମୁଁ ନିଶ୍ଚୟ ସହର ନେଇଯିବି। କିନ୍ତୁ, ଖୁଚୁରା ପଇସା ଆଣିବାକୁ

ଭୁଲିବ ନାହିଁ ।'' ସାମାନ୍ୟ ମୁରୁକି ହସି କଣ୍ଡକ୍ଟର କହିଲେ ।

ଭାଲି ଟିକିଏ ହସି ଦେଇ ବସ୍‌ରୁ ତଳକୁ ଡେଇଁ ପଡ଼ିଲା । ତା'ପରେ ସେ ଏକମୁହାଁ ହୋଇ ଘର ଆଡ଼କୁ ଦଉଡ଼ି ଚାଲିଲା ।

ଘର ଭିତରକୁ ପଶିଯାଇ ଭାଲି ଦେଖିଲା, ମା' ଉଠିସାରି କାହା ସହିତ କଥାବାର୍ତ୍ତା କରୁଛନ୍ତି । ଆସିଛନ୍ତି ଗଳି ଆରପାରିରେ ରହୁଥିବା ମଞ୍ଜୁମାଇଁ । ସେ ଭାରି ଗପୁଡ଼ି । ଥରେ ତାଙ୍କର ପାଟି ଖୋଲିଲେ ଆଉ ବନ୍ଦ ହୁଏ ନାହିଁ ।

ଭାଲିକୁ ଦେଖି ମାଇଁ ପଚାରିଲେ, ''ତୁ କୁଆଡ଼େ ଯାଇଥିଲୁ ? ମାଇଁ ସବୁବେଳେ କିଛି ନା କିଛି ପଚାରନ୍ତି । ଭାଲି ମାଇଁଙ୍କର କଥା ନଶୁଣିଲା ପରି ସାମାନ୍ୟ ହସିଦେଇ ଘର ଭିତରକୁ ଚାଲିଗଲା । ତା'ପରେ ମା' ଓ ମାଇଁଙ୍କ ଭିତରେ ଗପସପ ଚାଲିଲା...

''ତୁମେ ଠିକ୍ କହିଛ । କେତେ କେତେ ଘଟଣା ଆମ ଆଖି ଆଗରେ ଓ ଦୁନିଆ ବାହାରେ ଘଟିଯାଉଛି । ସେ ସବୁ ବିଷୟରେ ଜାଣିବା ଆମ ପକ୍ଷରେ ସମ୍ଭବ କି ? ଯଦି ଆମେ ସେ ବିଷୟରେ ଚେଷ୍ଟା କରୁ, ତା'ହେଲେ ଆମେ କିଛି ଅନ୍ତତଃ ଜାଣିପାରିବା । ହେଲେ ସେ ସବୁ ସଂପୂର୍ଣ୍ଣ ରୂପେ ବୁଝିବା ଆମ ପକ୍ଷରେ କ'ଣ ସମ୍ଭବ କି ?'' ଭାଲିର ମା' ମାଇଁଙ୍କୁ କହୁଥିଲେ ।

ଭାଲି ହଠାତ୍ କହିଲା, ''ମା' ତୁମେ ଠିକ୍ କହୁଛ ।''

''କ'ଣ କହିଲୁ ?'' ମା' ପଚାରିଲେ । ''ତୁମ ସହିତ ମୁଁ ଏକମତ ଯେ, ଆମର ଅଜ୍ଞାନରେ ବହୁତ ଜିନିଷ ଘଟିଯାଉଛି ।''

''ଏମିତି ବକଟେ ଛୁଆ । କେମିତି ବଡ଼ମାନେ କଥାବାର୍ତ୍ତା ହେଲାବେଳେ ମଝିରେ ପଡ଼ି କଥା କହୁଛି । ତାକୁ ମନାକର ।'' ମାଇଁ କହିଲେ ।

ଭାଲି ଟିକିଏ ମୁରୁକି ହସିଦେଲା । ଏହି ହସଟି ମା' ଓ ମାଇଁଙ୍କ ମନରେ କିଛି ପ୍ରଭାବ

ପକାଇଲା କି ? କିନ୍ତୁ ଭାଲିର ମନରେ ପ୍ରତି ବିଷୟରେ ଜାଣିବା ଲାଗି କୌତୂହଳ ବିଷୟରେ ସେମାନେ କିଛି ବୁଝିପାରି ନଥିଲେ । ସେମାନେ କ'ଣ ଏକଥା କେବେ ମଧ୍ୟ ବୁଝି ପାରିବେ ?



